# ସମାଲୋଚନା ନା ଅସଭ୍ୟତା



ଶୁଭେନ୍ଦୁ ମୋହନ ଦାସ

ସାମସ୍ତିକୀ ପ୍ରକାଶନୀ

❊ ସମାଲୋଚନା ନା ଅସଭ୍ୟତା

❊ ଲେଖକ - ଶ୍ରୀ ଶୁଭେନ୍ଦୁ ମୋହନ ଦାସ

❊ ପ୍ରକାଶକ - ସାମୟିକୀ ପ୍ରକାଶନୀ, ବାଲେଶ୍ୱର

❊ ମୁଦ୍ରଣ — ଇନ୍ଦୁ ପ୍ରିଣ୍ଟିଂ ଏଣ୍ଡ ଓ୍ୱାକ୍ସିଙ୍ଗ୍ସ, ବାଲେଶ୍ୱର

❊ ମୂଲ୍ୟ - ଏକ ଟଙ୍କା

ବନ୍ଧୁଗଣ,

ଏ ଦେଶରେ 'ଅକ୍ଷପାଦ' ନାମକ ଏକ ପତ୍ରିକା ପ୍ରକାଶ ପାଏ। ତାହା ସାହିତ୍ୟ ସଂସ୍କୃତି ସମାଜ ଉଦ୍ଦେଶ୍ୟରେ ସମର୍ପିତ। ଏହି ପତ୍ରିକାରେ 'ସମାଲୋଚକର ଚିଠି' ନାମକ ଏକ ନିୟମିତ ବିଭାଗରେ ଶ୍ରୀ କୋଦଣ୍ଡ ପାଣିଗ୍ରାହୀ ନାମକ କେହି ଜଣେ ଲେଖକ ଲେଖନ୍ତି।

ଏ ଦେଶର ପ୍ରତ୍ୟେକ ଶିକ୍ଷିତ, ସଭ୍ୟ ରୁଚିଶୀଳ ସାହିତ୍ୟିକ ଓ ସାହିତ୍ୟ ପାଠକର ଦୃଷ୍ଟିକୁ ଏକ ପ୍ରବନ୍ଧଧର୍ମୀ ପ୍ରତିବେଦନଟି ଆଣିବାର ଉଦ୍ଦେଶ୍ୟ ହେଉଛି ଆଜିକୁ ପ୍ରାୟ ଚାଳିଶ ବର୍ଷ ଧରି ସାହିତ୍ୟ ସାଧନାରେ ବ୍ରତୀ ହୋଇଥିବା ଏ ଲେଖକ ପ୍ରତି ଅକାରଣରେ ଅନ୍ଧ ଭାବରେ କିଛି ଅଶାଳିନ କଟୁ ମନ୍ତବ୍ୟ କରିଥିବା ଶ୍ରୀ ପାଣିଗ୍ରାହୀଙ୍କର ସମାଲୋଚନାର ଶୈଳୀ ପ୍ରତି ଲକ୍ଷ୍ୟ ଦିଅନ୍ତୁ ଏବଂ ସାହିତ୍ୟିକ ଭାବେ ନିଜକୁ ସତର୍କ ଓ ପ୍ରସ୍ତୁତ ରଖନ୍ତୁ।

ମାନନୀୟ ସୁଧୀଜନ,

'ସମାଲୋଚନା' ନାମରେ ଚାଲିଥିବା ସେ ପତ୍ରିକାର ୧୫ ନଂ ସଂଖ୍ୟାଟିର ପୃ ୩୦-୩୪ ପଢନ୍ତୁ ଏବଂ ସମ୍ପାଦକଙ୍କର ଦାୟିତ୍ୱ ଏ କ୍ଷେତ୍ରରେ କ'ଣ ହେବା ଉଚିତ ଥିଲା— ସେ ବିଷୟରେ ମଧ୍ୟ ଚିନ୍ତା କରନ୍ତୁ। ଏହି ସଂଖ୍ୟାରେ ମୋର ୨୨ ବର୍ଷ ତଳର ଏକ କବିତାର ମାତ୍ର ଦୁଇଧାଡ଼ ଉଦ୍ଧୃତି ପଢି ଜଣକର ମାନସିକ ବିକୃତିକୁ ସମ୍ପାଦକ ପ୍ରୋତ୍ସା-ହିତ କରିଛନ୍ତି କିପରି ତାହା ମଧ୍ୟ ଦେଖନ୍ତୁ।

'ଅକ୍ଷପାଦ'ର ୧୪ ନଂ ସଂଖ୍ୟାରେ ଶ୍ରୀ ଗୁରୁ ମହାନ୍ତି ତାଙ୍କର ଧାରାବାହିକ ସ୍ମୃତି ଚାରଣ ରେ ('ଆମେ ନରମ ପନ୍ଥୀ') ମୋର ଦୁଇଟି ଚିଠି ଉଦ୍ଧାର କରିଥିଲେ । ତାଙ୍କର ପ୍ରସଙ୍ଗ ଥିଲା- ସେ ଏକଦା ସମ୍ପାଦନା କରୁଥିବା ଟ ଓ ଲୁ ନାମକ ଏକ ପତ୍ରିକାରେ ଲେଖା ଗ୍ରହଣ ମନୋନୟନ ତଥା ସମ୍ପା-ଦନା ସମ୍ପର୍କିତ କେତେକ ତଥ୍ୟ ପାଠକର ଗୋଚରକୁ ଆଣିବା । ସେ ସମ୍ପର୍କରେ ସେ ଅକ୍ଷପାଦ (୧୩) ପୃ ୧୧୭ ଏବଂ ପୃ୧୧୮ରେ ସେ ତାଙ୍କ କଥା କହିଛନ୍ତି । ଯାହାର ମୋଟ କଥା ହେଲା-ବହୁ ଚିଠି (ଶୁଭେନ୍ଦୁ ମୋହନଙ୍କ କବିତା ଗୃହୀତ ହୋଇ ସ୍ଥାନ ପାଇବା ପାଇଁ ଯେଉଁ ଏକାଧିକ ଉଭୟ ପଟର ପତ୍ରାଳାପ) ଆଦାନ ପ୍ରଦାନ ହୋଇଥିଲା କୌଣସି ଏକ କବିତା ସମ୍ପର୍କରେ । ପୁନଶ୍ଚ ଅକ୍ଷପାଦ (୧୪) ପୃ ୩୬ରେ 'ଯେଉଁ ପଦ୍ଧତି ଅବଲମ୍ବନ କରୁଥିଲୁ' ଇତ୍ୟାଦି କହି ତାଙ୍କ ବକ୍ତବ୍ୟ ପରିଷ୍କାର କରିଛନ୍ତି । ଅର୍ଥାତ୍, ସମ୍ପାଦକୀୟ ନୀତି ତାଙ୍କର (ଶ୍ରୀ ଗୁରୁ ମହାନ୍ତିଙ୍କର) କ'ଣ ଥିଲା ତା' ସପକ୍ଷରେ ପ୍ରସଙ୍ଗ ଦୃଷ୍ଟିରୁ ମୋର ଚିଠି ଦୁଇଟି ଉଦ୍ଧାର କରିଛନ୍ତି । ବାସ୍ତବିକ ବହୁ ଚିଠି ଦିଆ ନିଆ ହୋଇଥିଲା । ମୁଁ ଗୋଟିଏ ବି ସାଇତି ରଖିନାହିଁ ।

ଅକ୍ଷପାଦ ୧୪ ନଂ ସଂଖ୍ୟାର ସ୍ମୃତିଚାରଣରେ ଶ୍ରୀ ମହାନ୍ତି ଉଦ୍ଧାର କରିଥିବା ମୋର ଦୁଇଟି ଚିଠି ମଧ୍ୟରୁ (ଗୋଟିଏ ଥିଲା ଇଂରାଜି ଏବଂ ଅନ୍ୟଟି ଓଡ଼ିଆ) ଗୋଟିଏ ଚିଠି ଅର୍ଥାତ୍ ଓଡ଼ିଆ ଚିଠିଟି 'ସମାଲୋଚକର ଚିଠି' ସ୍ତମ୍ଭରେ ଲେଖୁଥିବା କେହି ଜଣେ କୋଦଣ୍ଡ ପାଣିଗ୍ରାହୀଙ୍କୁ ବ୍ୟସ୍ତ ଓ

ବିବ୍ରତ କରିଛି ଏବଂ ତାଙ୍କର ଆତ୍ମାକୁ (ସେ ଲେଖିଛନ୍ତି 'ମୋ ଦେ। ଅକ୍ଷରିମୟ ଆତ୍ମା) ଏପରି ବିକ୍ଷାକ୍ତ କରିଛି ଯାହା ଫଳରେ ସେ ମହାଶୟ ସାଧାରଣ ସୌଜନ୍ୟ ଭୁଲିଯାଇ ଅକ୍ଷପାଦ ୧୪ ନଂ ସଂଖ୍ୟାରେ ପ୍ରଳାପ ପ୍ରଖର ଅତି ନିମ୍ନ ସ୍ତରର ଗଦ୍ୟ ଲେଖି ତାଙ୍କର ଉଷ୍ମା ପ୍ରକାଶ କରିଛନ୍ତି । ତେବେ ଯେଉଁ ପ୍ରକାର ଗଦ୍ୟ ସେ ଲେଖନ୍ତୁ ସେଥିରେ ମୋର କିଛି କହିବାର ନାହିଁ କିନ୍ତୁ 'ସାହିତ୍ୟ ସଂସ୍କୃତି ସମାଜ' ଉଦ୍ଦେଶ୍ୟରେ ସମର୍ପିତ ଏକ ପତ୍ରିକାରେ ସମ୍ପାଦକଙ୍କର କ'ଣ କିଛି ଦାୟିତ୍ୱ ନାହିଁ ? ସମ୍ପାଦକ କ'ଣ କେବଳ ସଂକଳକ ?

ଧରଯାଉ ପ୍ରଥମରୁହିଁ ପାଣିଗ୍ରାହୀ ମହାଶୟ ଦାୟିତ୍ୱହୀନ ଭବେ ଲେଖିଲେ- 'ବାଲେଶ୍ୱରର ସାହିତ୍ୟିକ ବଟ ବୃକ୍ଷ XXX ଶ୍ରୀ ବ୍ରଜନାଥ ରଥ, ତେଣୁ ବାବୁ ଶୁଭେନ୍ଦୁ ମୋହନ ତାଙ୍କରି ପ୍ରରୋଚନାରେ ପ୍ରରୋଚିତ ହୋଇ ଲେଖିଛନ୍ତି" ( ଅକ୍ଷପାଦ- ୧୪ ପୃ ୩୧ ) ମୋର ଏଠି କହିବାର କଥା ବାଲେଶ୍ୱରର ସାହିତ୍ୟିକ ବଟବୃକ୍ଷ ବ୍ରଜବାବୁ ହୋଇପାରନ୍ତି ବା ଆଉ ଯିଏ ହୁଅନ୍ତୁ ସେଥିରେ ମୋର କିଛି ଯାଏ ଆସେ ନାହିଁ । ଶ୍ରୀ ପାଣିଗ୍ରାହୀଙ୍କ ଚିନ୍ତାରେ ବ୍ରଜବାବୁ ବାଲେଶ୍ୱରର ସାହିତ୍ୟିକ ବଟବୃକ୍ଷ, କିନ୍ତୁ ଶୁଭେନ୍ଦୁ ମୋହନ ଦାସ ନାମକ ବ୍ୟକ୍ତିଟି ଯିଏ ବ୍ରଜବାବୁଙ୍କର ସମାନ ବୟସୀ କେବେ ହେଲେ ସେ ବୃକ୍ଷର କୌଣସି ଡାଳର ପକ୍ଷିଟିଏ ହୋଇ ବସିନାହିଁ କି ସେ ବୃକ୍ଷର ଛାୟାରେ ଶ୍ରାନ୍ତ ବାଟୋଇଟିଏ ହୋଇ ଆଶ୍ରୟ ନେଇ ନାହିଁ । ବ୍ରଜବାବୁଙ୍କ ସହ ମିଶି ମୁଁ ଓ ସତ୍ୟନାରାୟଣ ପହରଜ ଏକଦା "ତିନୋଟି ନିଃଶ୍ୱାସର ଆକାଶ" ନାମକ ଏକ କବିତା ବହି କରିଛୁ- କେହି କାହାର ଶିଷ୍ୟ ନ ଥିଲୁ ।

ବଡ ଆଶ୍ଚର୍ଯ୍ୟର କଥା ଯେ, ସମ୍ପାଦକୀ ସ୍କ୍ରିନୀ ବା ଅବେକ୍ଷଣଟିକୁ ଉପେକ୍ଷା କରାଯାଇଛି ଏବଂ ଦେଖାଗଲା ଯେ ଏ କ୍ଷେତ୍ରରେ ସମ୍ପାଦକ ନାମକ ବ୍ୟକ୍ତିଟି ଭୀଷଣ ଅସହାୟ ସେଥିପାଇଁ ବୋଧହୁଏ ସମାଲୋଚକଙ୍କର କ୍ରୋଧର ଶୀକାର ହୋଇ ପାରନ୍ତି ବର୍ଷିୟାନ କବି ସନୁଜୀ ରଓ, ମାନନୀୟ ସମାଲୋଚକ ଶ୍ରୀ ଯତୀନ୍ଦ୍ର ମୋହନ ମହାନ୍ତି, ଏବଂ କବି ରାଧା ମୋହନ ଗଡନାୟକ (ପୃ ୩୨ ଏବଂ ୩୩, ଅକ୍ଷପାଦ-୧୪ ଦେଖନ୍ତୁ) । କବି ବ୍ରଜନାଥ ରଥ ମଧ୍ୟ ପାଣିଗ୍ରାହୀଙ୍କ ବିଶେଷ ଧରଣର ବିଶେଷଣ [ପୃ ୩୧] ପ୍ରହାରରୁ ବାଦ ଯାଇ ନାହାନ୍ତି ।

କୁହାଯାଇଛି ନିଃଶବ୍ଦ ପ୍ରତିବାଦର କବିଙ୍କ ଦ୍ୱାରା ପ୍ରରୋଚିତ ହୋଇ- ମୁଁ କହିବାକୁ ଚାହୁଁଛି, ଢେ ମହାପାତ୍ରଙ୍କ ଦ୍ୱାରା ନିଃଶବ୍ଦ ପ୍ରତିବାଦ ପ୍ରକାଶ ପାଏ ଡିସେମ୍ବର ୧୯୭୭ରେ । ମୋର ଏ କବିତାଟି (ଅଭିଳାଷକୁ ଉପଦେଶ) ୧୯୬୯ର ରଚନା ଏବଂ ଏହି କବିତାର କିଛି ପଙ୍କ୍ତି ବା ଶବ୍ଦ ନେଇ ଗୁରୁବାବୁଙ୍କ ସହ ପତ୍ରାଳାପ ୧୯୬୯ ଡିସେମ୍ବରରୁ ୧୯୭୦ ଜାନୁୟାରୀ ଶେଷଯାଏ । ଅତଏବ ବ୍ରଜବାବୁଙ୍କ ଦ୍ୱାରା ପ୍ରରୋଚିତ ହେବା କଥା ଉଠିଲା କିପରି ? ଅକ୍ଷପାଦ ସଂଖ୍ୟା ୧୪ ପୃ୩୧ରେ 'କବି ଗୁରେନ୍ଦ୍ର ମୋହନ ଦାସଙ୍କର ୧୯୭୦(?) ପ୍ରଶ୍ନ ଚିହ୍ନ କାହିଁକି ? ଏଇଟି ମନେ ରଖିବା କଥା ସେ ଲେଖାଟି ୧୯୬୯ର ରଚନା । ୧୯୬୯ ଶେଷ ଏବଂ ୧୯୭୦ ପ୍ରାରମ୍ଭ- ଏଇ । ଏଇ ସମୟ କାଳ ମଧ୍ୟରେ ଗୁରୁବାବୁଙ୍କ ସହ ପତ୍ରାଳାପ, ଅର୍ଥାତ୍ ପ୍ରାୟ ୨୨ ବର୍ଷ ତଳର ଲେଖାଟିକୁ ନେଇ [ସଂପୂର୍ଣ୍ଣ କବିତାଟି ନ ପଢି, ତାର ମାତ୍ର ଗୋଟିଏ

କି ଦୁଇଟି ଧାଡ଼ିକୁ ନେଇ ]. ସମାଲୋଚକ ମହାଶୟ ଏମିତି ଲେଖିଛନ୍ତି-ଯେମିତିକି ସେ ଧରିନେଇଛନ୍ତି ଯେ ତାହା ଏବେକା ଲେଖା ।

'ଶୁଭେନ୍ଦୁ ବାବୁଙ୍କର ଯୋନି ଚର୍ଚ୍ଚା" ଏପରି କଦର୍ଯ୍ୟ ଅଶାଳୀନ ମନ୍ତବ୍ୟ ଦେବା ପୂର୍ବରୁ ତାଙ୍କର ବହୁଥର ଭାବିବା ଉଚିତ ଥିଲା, ଏପରି ମନ୍ତବ୍ୟ ଦେବା ଠିକ ହେବ କି ନାହିଁ । କେଉଁ ବେସିସ୍, କେଉଁ ପ୍ରେକ୍ଷୀରେ ଏପରି ମନ୍ତବ୍ୟ ଶ୍ରୀ ପାଣିଗ୍ରାହୀ ମହାଶୟ ଦେଲେ ? ଅକ୍ଷପାଦ-୧୪ରେ, ବନ୍ଧୁଗଣ, ଆପଣମାନେ ପୃ ୩୧ରୁ ପୃ ୩୩ ପର୍ଯ୍ୟନ୍ତ ମାନବ ଶରୀରର ଆନାଟମୀ ଚର୍ଚ୍ଚା ପାଇବେ ।

ମାନନୀୟ ପାଠକ/ପାଠିକା— ଶୁଭବାବୁ କିଛି ପଙ୍କ୍ତିର ପରିବର୍ତ୍ତନ ଘଟାଇଥିଲେ—ମୋର ଯେତେଦୂର ମନେ ପଡ଼େ ଏବଂ ତାଙ୍କର ପରିବର୍ତ୍ତନ ଘଟାଇବାଟା ତାଙ୍କର ସେ ସମୟର ତଥାକଥିତ ସମ୍ପାଦକୀୟ ନୀତି ଓ ସାହିତ୍ୟ ଜିଜ୍ଞାସାର ଅନୁବର୍ତ୍ତୀ— ଏବଂ ମୁଁ ପରିବର୍ତ୍ତନ ନ ଘଟାଇବାଟା ବା କୌଣସି ପରିବର୍ତ୍ତନ ପାଇଁ ଅରାଜି ହେବା ବା ମୋ-ରୁଚି-ଅନୁଯାୟୀ-ପରିବର୍ତ୍ତନ-ପରିମାର୍ଜନ କରିବା ମୋ ସାହିତ୍ୟ-ଆଦର୍ଶର ଅନୁବର୍ତ୍ତୀ, ଠିକ ଭାବେ କହିଲେ,-ସେ ଆଦର୍ଶ ସେ ସମୟରେ ସେ କବିତା କ୍ଷେତ୍ରରେ ବା ସେପରି କିଛି କବିତା କ୍ଷେତ୍ରରେ ଥିଲା ଶୈଳୀ ନିର୍ଭର, କବିତାର ଗଠନ ସଂପର୍କିତ, ଧ୍ୱନି ସଂପର୍କିତ କିଛି କୌଶଳ କିଛି ଚିନ୍ତା ଦ୍ୱାରା ଆଙ୍କନ ।

ସେ କବିତାଟି ଏ଼ଠି ସମ୍ପୂର୍ଣ୍ଣ ଉଦ୍ଧାର କରିବା ଆବଶ୍ୟକ ମନେ କରୁନି । ତା'ର ବିଷୟବସ୍ତୁ, ଛନ୍ଦ, ଶବ୍ଦ ବ୍ୟବହାର ଧ୍ୱନି-ସ୍ୱର-ଗତି, ମାଧ୍ୟମ-କନସିଟ୍-ଚିତ୍ରକଳ୍ପ କୌଣସି ଚରିତ୍ର ମୁହଁରେ ସଂଳାପ ବା କୌଣସି ଚରିତ୍ରର ଇଣ୍ଟିରିଅର ମନୋଲଗ ଇତ୍ୟାଦି ଉକ୍ତଗତ- ପ୍ରକରଣଗତ ନାନା କଥା କହିବାକୁ ରହୁଁନି ମଧ୍ୟ ।

ଗୁରୁବାବୁଙ୍କ ଠାରୁ ଅମନୋନୀତ ହୋଇ ଫେରିବା ପରେ ସେ କବିତାଟି ନବରବି-୨ରେ ପ୍ରକାଶିତ ହୋଇଥିଲା- ସମ୍ଭବତଃ ୧୯୬୦ରେ । ସେତେବେଳେ ତ କିଛି ପ୍ରତିକ୍ରିୟା ନ ଥିଲା ଲେଖାଟି ଦୋଷ୍ୟ ବୋଲି କେହି ଲିଖିତ ମନ୍ତବ୍ୟ ମଧ୍ୟ ଦେଇ ନ ଥିଲେ ।

ଗୁରୁବାବୁ ସମଗ୍ର କବିତାଟି ଅବଶ୍ୟ ଉଦ୍ଧାର କରିନାହାନ୍ତି, କାରଣ ଆବଶ୍ୟକ ମନେ କରି ନାହାନ୍ତି- ତାଙ୍କର ପ୍ରତିପାଦ୍ୟ ଥିଲା, ବନ୍ଧୁଗଣ ମନେ ରଖନ୍ତୁ, ସେ ସମୟରେ 'ଝଙ୍କାର'ର ସମ୍ପାଦକୀୟ ନୀତି-ନିୟମ ସମ୍ପର୍କରେ କେତେକ ତଥ୍ୟ ପ୍ରକାଶ କରିବା ଯାହା ସେ ଅକ୍ଷପାଦର ୧୩ ନଂ ସଂଖ୍ୟା (ବା ୪ର୍ଥ ବର୍ଷ ୨ୟ ସଂ) ରେ ମଧ୍ୟ ସୂଚନା ଦେଇଥିଲେ- ମୁଁ ପୂର୍ବରୁ କହିଛି ।

ଏହାର ପରବର୍ତ୍ତୀ, ଯାହା ରଥ-ସ୍ୱାଧୀନତା ଦିବସ ସଂଖ୍ୟା-ସେଥିରେ ମଧ୍ୟ ଉକ୍ତି ଅଛି 'ଲେଖା ନିର୍ବାଚନ କଲା- ବେଳେ ଆମେ ଯେଉଁ ପଦ୍ଧତି ଅବଲମ୍ବନ କରୁଥିଲୁଁ' ।

ତାହେଲେ ପ୍ରସଙ୍ଗଟି ଥିଲା- ସେ କିଛି ପରିବର୍ତ୍ତନ ଋହୁଁ ଥିଲେ ଏବଂ ମୁଁ ତାଙ୍କ ନିର୍ଦ୍ଦେଶ ମୁତାବକ ପରିବର୍ତ୍ତନ ନ କରିବା ପାଇଁ ଅଟଳ ଥିଲି । କିମ୍ବା ମୁଁ ମୋ ରୁଚି ଅନୁଯାୟୀ ପରିବର୍ତ୍ତନ ବା ପରିମାର୍ଜନ କେତେଦୂର ହୋଇ ପାରିବ ଲେଖିଥିଲି- ଏବଂ ତା ସପକ୍ଷରେ ମୋ'ର ଯୁକ୍ତିଗୁଡ଼କ ଥିଲା ଲିଟେରାରୀ, ସଂକ୍ଷେପରେ କବିତାର ସ୍ଥାପତ୍ୟ ସଂପର୍କିତ ।

ମୋର ମୂଳ ଅଂଶ/ଉଦ୍ଧୃତାଂଶଟି ଥିଲା:- "ନାଭିର କିଛିଟା ତଳେ ପବିତ୍ର ପାତାଳେ" ଯାହା ପରିବର୍ତ୍ତନ କରିବା ପାଇଁ ମୁଁ ଅରାଜି ହେଲି ଏବଂ ମୋର ଅରାଜି ହେବାପାଇଁ ଯୁକ୍ତି ଗୁଡ଼କ ଅକ୍ଷପାଦ-୧୪ ପୃଷ୍ଠା ୩୮ରୁ ୪୪ରେ ପାଠକ ପାଇବେ ।

ଅତଏବ୍ ମୁଁ ଯାହା ଋହିଁ ନାହିଁ-ସେ କଥାକୁ ସ୍ମରଣ ନ କରି ମୋ ପ୍ରତି କଟୁ ଭଷାରେ-

କ) 'ବାବୁ ଶୁଭେନ୍ଦୁ ମୋହନ ତମେ ମନେ ରଖ

ଖ) ବାବୁ ନାଭିର କିଛିଟା ତଳେ ଲେଖିଲ ଲେଖିଲ ପୁଣି ତା ତଳେ ଯାହାଟା ଥାଏ- ଇତ୍ୟାଦି

ତେଣୁ ଦେଖାଯାଉଛି ସମାଲୋଚକ ପଦବୀରେ ବିଭୂଷିତ ଶ୍ରୀ କୋଦଣ୍ଡ ପାଣିଗ୍ରାହୀ କବିତାର ନିର୍ମିତି ସଂପର୍କିତ ପ୍ରବନ୍ଧ ପ୍ରତୀମ ଚିଠିଟି ପଢ଼ି ବୁଝିପାରିବା ଦୂରେ ଥାଉ, ଆଦୌ ପଢ଼ି ନାହାନ୍ତି, ପଢ଼ିଥିଲେ ଏବଂ ଧୈର୍ଯ୍ୟର ସହ ପଢ଼ିଥିଲେ ପ୍ରଥମତଃ ଶ୍ରୀ ଗୁରୁ ମହାନ୍ତଙ୍କର ବକ୍ତବ୍ୟର ସାରାଂଶ ବା ସ୍ପିରିଟ୍ ଟି ଧରି ପାରିଥାନ୍ତେ, ଦ୍ୱିତୀୟରେ ମୋର ସେଇ ଗଦ୍ୟରୁ କବିତା ତିଆରି ସଂପର୍କିତ ବହୁ କଥା ଜାଣିପାରିଥାନ୍ତେ ।

ଗୋଟିଏ କବିତାର ଗୋଟିଏ ଧାଡ଼ି ବା ଏପରିକି ଗୋଟିଏ ଶବ୍ଦର ପରିବର୍ତ୍ତନ ବା ଅପରିବର୍ତ୍ତନ ନେଇ ମୁଁ ବା ଯେ କୌଣସି ସତ କବି ଚିନ୍ତିତ ରହନ୍ତି । କବିତା ତିଆରି ସମୟରେ ଗାମାର ଅଙ୍ଗ ପୋଏଟ୍ରି ସମ୍ପର୍କରେ ଜଣେ କବି କିପରି ସତର୍କ କିପରି ଉଚିତ ରହେ ତାହା ନିରୀକ୍ଷଣ କରିବାର କ୍ଷମତା ଯାହାର ନାହିଁ ସେ କି ପ୍ରକାର ସମାଲୋଚକ ? ମୋର କୌଣସି କବିତା ପଢ଼ି ବୁଝିବାର ସାମର୍ଥ୍ୟ ତାଙ୍କର ନାହିଁ- ଆଲୋଚନା କରିବାର ପ୍ରଜ୍ଞା ଏବଂ ଉଚ୍ଚତା ଯାହାର ଥିବ ତା'ର ଗଦ୍ୟରୁ ତାହା ଜଣାପଡ଼ିବ ।

ଶ୍ରୀ ପାଣିଗ୍ରାହୀ, ମୋ ଲେଖାରେ 'ସେ ଶବ୍ଦ' ଟି ମୁଁ କୁଆଡେ ଜାତୀୟ କରଣ କରିଦେଇଛି ବୋଲି ଲେଖିଛନ୍ତି । 'ଜାତିୟ କରଣ' ଶବ୍ଦଟିର ଅର୍ଥ କ'ଣ ? ସେ ପୁଣି ମଳଦ୍ୱାର,ପୁରିଷ ଏପରି ଶବ୍ଦ ବ୍ୟବହାର କରିବା ପର୍ଯ୍ୟନ୍ତ ଚାଲି ଯାଇଛନ୍ତି । ଉଦ୍ଦେଶ୍ୟ ?

ତେଣୁ ବନ୍ଧୁଗଣ, ଆପଣଙ୍କ ଦୃଷ୍ଟି ଆକର୍ଷଣ ଗୋଟିଏ ଘଟଣା ପତି କରୁଛି ଯେ ସମ୍ପାଦକ ଆସନରେ ଯେଉଁ ମହାଶୟ ଅଛନ୍ତି ସେ ମହାଶୟ ଏପରି ଅଶାଳୀନ ଲେଖା ପ୍ରକାଶ କଲେ କିପରି ? ପ୍ରକାଶ କରିବା ପୂର୍ବରୁ ୧୪ ନଂ ସଂଖ୍ୟାର ମୋର ସେଇ ଚିଠିଟି ପଢ଼ି ଦେଖିବାର ଥିଲା- ମୁଁ ଯୋନି ଶବ୍ଦ ବ୍ୟବହାର କରିନାହିଁ ସେ କବିତାର ଉଦ୍ଧୃତାଂଶରେ- ଏପରିକି ସେ କବିତାରେ କୌଣସି ସ୍ଥଳରେ ମଧ୍ୟ- ବ୍ୟବହାର କରିବାକୁ ଶେଷ ପର୍ଯ୍ୟନ୍ତ ଅଟକି ହୋଇଛି ଏବଂ ସେଇଥିପାଇଁ ତ କବିତାଟି ପ୍ରକାଶ ପାଇ ନ ଥିଲା !

ପୁନଶ୍ଚ ସମ୍ପାଦକ ମହାଶୟଙ୍କର ଦେଖିବା ଉଚିତ ଥିଲା ଯେ ଏହି ୧୪ ନଂ ସଂଖ୍ୟାର ପୃ୪୨ ଓ ୪୩ ରେ କେଉଁ ପ୍ରସଙ୍ଗରେ ବାରମ୍ବାର କୁହାଯାଇଛି 'ଅର୍ଥହୀନ' ଓ 'ଅବାନ୍ତର' ଦେଖିବା ଉଚିତ ଥିଲା ଏବଂ ସେହି ସଂଖ୍ୟାର ପୃ ୪୧ ଏବଂ ପୃ ୪୨ ରେ ଶିଳ୍ପ କର୍ମଟି ଅସୁନ୍ଦର ହୋଇଯିବା କଥା ମଧ୍ୟ କୁହାଯାଇଛି । ତା ସତ୍ତ୍ୱେ ସମାଲୋଚକ କିପରି ଲେଖିଲେ ପୁଣି ତା ତଳେ ଯାହାଟା ଥାଏ (ଅ.ପା ପୃ ୩୧ ୧୪ ନଂ ସଂଖ୍ୟା ) ଏବଂ ଲେଖିଲେ "କବି ଉଷାରେ-" ପୃ ୩୨ ଅକ୍ଷପାଦ ୧୪ ନଂ ସଂ) । ଏଟା ମାତ୍ରାତିରିକ୍ତ ଅସଭ୍ୟତା ନୁହେଁ କି ? ମୁଁ ଭାବି ପାରୁନି ଏପରି ଅସଭ୍ୟ ଲେଖା ଏ ଦେଶରେ କିପରି ପ୍ରକାଶ ପାଏ ? ଏବଂ ବନ୍ଧୁଗଣ, ଏପରି ମୂର୍ଖତାର ବିପକ୍ଷରେ କାହିଁ ଆନ୍ଦୋଳନ ହେବାର ତ ମୁଁ ଦେଖୁନି ? ଶୁଭ ବୋଧ ବୋଲି କିଛି ଗୋଟିଏ କଥା ଅନ୍ତତଃ ସାହିତ୍ୟିକମାନଙ୍କ ପାଖରେ ଥାଏ ବୋଲି ମୁଁ ବିଶ୍ୱାସ କରେ । ସମ୍ପାଦକ ମହୋଦୟଙ୍କୁ ବାରମ୍ବାର ଚିଠି ଲେଖି ମୁଁ କିଛି ବି ଉତ୍ତର ପାଇନି । ଅତଏବ ଏ ସବୁ କ'ଣ ସମାଲୋଚନା ନା ଅଭଦ୍ରତା ?

ସମାଲୋଚନା କରି ନ ଜାଣି ଏବଂ କୌଣସି ସାହିତ୍ୟିକ ଆଲୋଚନାର ରସାସ୍ୱାଦନ କରିବାରେ ସମ୍ପୂର୍ଣ୍ଣ ଅସମର୍ଥ ହୋଇ 'ସମାଲୋଚକର ଚିଠି' ସ୍ତମ୍ଭରେ ନିଜର ବକ୍ତବ୍ୟ ଉପସ୍ଥାପିତ କରିବା ଏକ ଅସ୍ୱାଭବିକ ମାନସିକ ଦାରିଦ୍ର୍ୟର ନମୁନା । ଶ୍ରୀ ପାଣିଗ୍ରାହୀଙ୍କ ଭଳି ସ୍ଥୂଳ ମାନସିକତାର

ଅଧିକାରୀ ଏବଂ ଅଶିକ୍ଷିତ ବ୍ୟକ୍ତିଙ୍କ ସାହିତ୍ୟର ଅର୍ଥ ଯଦି ଅଭଦ୍ରତା ବୋଲି ବୁଝିଥାନ୍ତି ତେବେ ଏହି ବିକୃତ ମସ୍ତିଷ୍କର ପ୍ରଳାପ ଏକ ଇତର ବ୍ୟକ୍ତି ଭଳି ସାହିତ୍ୟର ପୃଷ୍ଠାରେ ଉପ-ସ୍ଥାପିତ କରି ସାହିତ୍ୟ ପୃଷ୍ଠାକୁ କଳଙ୍କିତ କରିବାର ପ୍ରୟାସରୁ ମୁକ୍ତ ରହିଥିଲେ ଯଥେଷ୍ଟ ଭଲ ହୋଇଥାନ୍ତା । ଯେଉଁ ସମ୍ପାଦକ ଏଭଳି ଲେଖାକୁ ପ୍ରୋତ୍ସାହିତ କରି ନିଜର ବିକୃତ ମାନସିକତାର ପରିଚୟ ଦିଅନ୍ତି ସେହିଭଳି ଏକ ନାବାଳକ ବ୍ୟକ୍ତିଙ୍କ ସମ୍ପାଦକ ବିଶେଷଣକୁ କଳଙ୍କିତ ନ କରିବା ଜାତି ପକ୍ଷେ ମଙ୍ଗଳଦାୟକ । କବିତା ଆଲୋଚନାକୁ ଅଗ୍ରସର ହୋଇଥିବା କୋଦଣ୍ଡ ପାଣିଗ୍ରାହୀ ନାମକ ବ୍ୟକ୍ତିଙ୍କି ମନେହୁଏ ଅନ୍ତତଃ ହାଇସ୍କୁଲ ପ୍ରକୋଷ୍ଠରେ ପଦାର୍ପଣ କରିଥିଲେ ଏପରି ଅସଭ୍ୟତା କରି ନ ଥାନ୍ତେ ।

ମୋର ଅନ୍ତିମ ଅନୁରୋଧ, ଏପରି ଅସଭ୍ୟତା ବିରୁଦ୍ଧରେ ବନ୍ଧୁଗଣ ସଜାଗ ରହନ୍ତୁ ।

